# ଜେମାଦେଈ କାନ୍ଦ

ଓ

## ଜେମାଦେଈ ରୋଦନ

ପ୍ରକାଶକ - ଶ୍ରୀରାଧାରମଣ ପୁସ୍ତକାଳୟ



ପ୍ରାପ୍ତିସ୍ଥାନ :-
ଶ୍ରୀରାଧାରମଣ-ପୁସ୍ତକାଳୟ
ବାଲୁବଜାର, କଟକ ।
ପୋ: ଚାନ୍ଦନୀଚୌକ ।

ନୂତନ ମୁଦ୍ରଣ

ମୂଲ୍ୟ ଦୁଇଅଣା

# ହେମାଦେଈ ରୋଦନ



କହେ ହେମାଦେଈ କୋହ କୋହ ହୋଇ ନୟନୁ ବୁହାଇ ନୀର,
କାଲେ ଅଗୋ ମାତା ହେଲ୍ ବଷପିତା ଫିଙ୍ଗୁଛ ମଟି ନଇର ଗୋ,
କହେ ଶୁଣ ଲୋ ହେମା,
କେଉଁ କଥା ତୋତେ ହେଲା ଊଣା ଲୋ । ୧ ।
ଖଟାଇଛୁ ଯାହା ମାଗ ତୋର ଖୁସି ଖେଦ ନ ଧର ମନର,
ଖୁଡ଼ ଯେ ଖୁଡ଼ୁତା ମୁହିଁ ତୋ ବାପକୁ କହୁ ବୁଝିବ ଖବର ଲୋ,
ଖସ୍ ଅସୁଛି ମାଡ଼,
ବେଗ ହୋଇ ଚଢ଼ ଖଡ଼ଖଡ଼ ଲୋ । ୨ ।
ଗୋଡ଼ରୁ ମୁଣ୍ଡ ପର୍ଯ୍ୟନ୍ତ ଅଳଙ୍କାର ଗଢ଼ି ଦେଇଅଛୁଁ ତୋର,
ଗେଣ୍ଡାମଣି ତୋତେ ରୂପ ଅପୂରୁବ କହୁ ତୁ ମୋର ଶ୍ୱଶୁର ଲୋ,
ଗୋଲ କରୁ କପାଳି,
ଗୃହସ୍ଥ ତୋ ଶ୍ରୀମନ୍ତ ଅଟଇ ଲୋ । ୩ ॥
ଘରେ ତୋତେ ପଦେ ଅକଟି କହୁଲେ ଘଡ଼ ଘଡ଼ି ନ ରୁଷିବୁ,
ଘୋଷା ହେଲେ ଶାଶୁ ଶ୍ୱଶୁର ଗୁରସ୍ତ ତାହାଙ୍କର ମନ ନେବୁ ଲୋ,
ଘର ତେବେ କରିବୁ,
ଘୋଡ଼ାଘୋଡ଼ି ହୋଇ ଗୃହିଥିବୁ ଲୋ । ୪ ।
ନିର୍ଲଜ୍ଜ ନୋହିବୁ ଲଜ୍ଜା କରିଥିବୁ ହେମା ମୋ ବଚନ ଶୁଣ,
ନଣନ୍ଦ ବଚନ ସବୁହିଁ କଠିଣ କଳି ନ କରିବୁ ପୁଣ ଲୋ;
ନ ପଡ଼ିବୁ ତୁ ଶୋଭ,
ଉଠିବୁ ରାହ ଘଡ଼ିଏ ଥାଉ ଲୋ । ୫ ।

ଚଢ଼ ଚଳ ଚଞ୍ଚଳ ନ କରିବୁ ଝିଅ ସ୍ୱାଙ୍କ ବାଢ଼ିଲା ବେଳେ,
ଚଟା କରି ଯେବେ ନଣନ୍ଦ କହିବେ ନ ଶୁଣିବୁ ତା କାନରେ ଲୋ,
ଅଷ୍ଟ ଚତୁଷ୍ପ ହେମା,
ଚଢ଼ ଥପ୍ପ କରିଥିବୁ ମୋ ମା ଲୋ । ୬ ।
ଛଟକ ପଥର କଲେ ହେବ ଘର ଛନ୍ନ ଛନ୍ନ ନୋହେ କହ,
ଛତଣା ନଯୋଗ କରିବୁ ତୁ ଭୋଗ ସବୁ ଖଞ୍ଜାଇ ଦେଉଛ ଲୋ,
ଯେବେ ନ ଥିବ ଘରେ,
ଯୋଗାଇବ କେଉଁ ପରକାରେ ଲୋ । ୭ ।
ଝିଅ ମୋ ଦୁଲଣୀ ହୋଇଣ ଫୁଲଣୀ ଖେଳୁଥିଲୁ ରାଜଦାଣ୍ଡେ,
ଝିମିଟେ ସେ ସବୁ ଅଜ କ ପାଇବୁ ସେ କଥା ନ ଧର ତୁଣ୍ଡେ ଲୋ,
ଝୋଟି ଦେବୁ ସକାଳୁ,
ଝଟ ବେଢ଼ ନ ଉଠିଲା ବେଳୁ ଲୋ । ୮ ।
ଞାସିଙ୍କ ସଙ୍ଗରେ ଗାଧୁଆ ତୁଠରେ ନ ହସିବୁ ହେମାଦେଈ,
ଞଣନ୍ଦେଇ ଶାଶୁ ଶୁଣିଲେ ଗଞ୍ଜିବେ ସତ ମିଛଟି ଲଗାଇ ଲୋ,
ଞାସିଙ୍କର ବଚନ,
ନ ଶୁଣିବୁ ହେମାଦେଈ କାନ ଲୋ । ୯ ।
ଟାପରା ଲୋକଙ୍କ କଥା ନ ଶୁଣିବ ତୁଟି କଛ ନ କହିବୁ,
ଟାହି କରି ତୋତେ ଯେବେ ସେ କହିବେ ତାହା ମନେ ନଧରିବୁ ଲୋ
ଟୋକା ଦଅର ସାନ
ଟାହି ଟାପରାରେ ନେବେ ଦନ ଲୋ । ୧୦ ।
ଠକେ ଠିକେ ତୋତେ କହୁଛ ବୁଝାଇ ହେଉ କର ହେମାଦେଈ,
ଠଣସୁନ୍ଦରୀ ମୋ ସୁକୁମାରୀ ଟର ଅଜ କେ ମହୀରେ ନାହିଁ ଲୋ,
ଠିକେ ନୃପଢ କହ,
ଝିଅ ମିଛେ କାନ୍ଦୁ କାହିଁପାଇଁ ଲୋ । ୧୧ ।
ଡଗର ଡକାଇ ମହାରାଜା ତହିଁ ଡକାଯାଉ କହୁଛନ୍ତି,
ଡୋଲି ସଜକର ବେହେରାମାନଙ୍କୁ ଡକାଇ ଆଣ ଝଟଢ ହେ,
ଡୋର ପାଟଶାଢ଼ୀକୁ,
ଦଅ ନଣନ୍ଦେଇ ପୋଟଳିକୁ ହେ । ୧୨ ।

ଢୋଲ ଶଙ୍ଖ ତୂରୀ ମୃଦଙ୍ଗ ମହୁରୀ ବାଜୁଥିବ ନାନାରଙ୍ଗ,
ଭଲ ନାଟୁଆଏ ନୃତ୍ୟ କରୁଥିବେ ଝିଅ ଡୋଲିଙ୍କର ଅଗ ହେ,
ଚଗ ଚମାଳ ଗାଇ,
ଚାଲୁଥିବେ ଦାଣ୍ଡେ ମେଳ ହୋଇ ହେ । ୧୩ ।
ଅଳଙ୍କାର ପେଡ଼ି ସଜାଡ଼ିଣ ମାତ ଡୋଲିରେ ରଖିଲେ ନେଇ,
ଅନେକ ଜେମାକୁ ବୁଝାଇ କହନ୍ତି କାନ୍ଦୁଅଛୁ କାହିଁପାଇଁ ଲୋ,
ଅଣିପିବେ ତୋ ଭାଇ,
ଅଠ ଦିନରେ ଦେବେ ପଠାଇ ଲୋ । ୧୪ ।
ତୋର ମନ ଜାଣି ପ୍ରଭୁ ଚକ୍ରପାଣି ଘଟାଇ ଅନନ୍ତ ବର,
ତାଙ୍କଠାରେ ଝିଅ ହେଲା ନ ବରଜୁ କହୁଅଛୁ ବାର ବାର ଲୋ,
ତଳେ ରୁଷିବୁ ନାହିଁ,
ଭୁଡ଼ ବଳେ ଫେରଷିବୁ ନେଇ ଲୋ । ୧୫ ।
ଥୋଇଲେ ପୋଇଲ ବୋଲି ଗାଳିଦେଲେ ଖଣ୍ଡା ହୋଇବଟି ତୋତେ,
ସାହି ପଡ଼ିଶାଏ ତାହାକୁ ଶୁଣିଲେ ଥଟ୍ଟା କରିବେ ସମସ୍ତେ ଲୋ,
ଥର ଥର ହୋଇଣ,
ଥିବୁ ରାନ୍ଧଣାଶାଳରେ ପୁଣ ଲୋ । ୧୬ ।
ଦିନେ ଏକା ହୋଇ ନ ଯିବୁ ଲୋ କାହିଁ ସାହି ପଡ଼ିଶାକୁ ବୁଲି,
ଦେଖିଲେ ତୋ ଶାଶୁ ଝାପସି ମାରିବ କହିବ ଏ ବାରବୁଲୀ ଲୋ,
ଦେଢ଼ଶୁର ଆଗରେ,
ଛିଡ଼ା ନୋହିବୁ ଥିଲେ ସେ ଘରେ ଲୋ । ୧୭ ।
ଧନ ସମ୍ପଦରେ ତୁ ହାତ କାହିଁରେ ଦେବୁ ନାହିଁ ଲୋ ଦୁଲଣୀ,
ଧୂଳାର ଗେଣ୍ଡା ଶ୍ୱଶୁର ଯେ କହିବ ମୋ ବୋହୂ ଅଟେ ଗୃହିଣୀ ଲୋ,
ଧିକ ହେବ ତୋ ଠାଣ,
ସହିପିବ ସିନା ବଡ଼ପଣ ଲୋ । ୧୮ ।
ନ କରିବୁ କାହା ସଙ୍ଗତରେ କଳି ନିନ୍ଦା ହୋଇବଟି ମୋତେ,
କଷଣ ବଚନ କହି କରି ତୋତେ ଉଡ଼ାଇ ଦେବେ ଇଙ୍ଗିତେ ଲୋ,
ନାକବାଟି ଝିଅକୁ,
ନାକ କାଟିକରି ତଡ଼ ତାକୁ ଲୋ । ୧୯ ।

ପର ସଙ୍ଗେ ପ୍ରୀତି ନ କରିବୁ ଜାଣି ମହତ ଯିବଟି ସରି,
ପଙ୍କାଜକ୍ଷି ଶାଶୁ ଶ୍ୱଶୁରଙ୍କ ଗୁଣ ସପତବାର ତୋହର ଲୋ,
ପିତା ଶୁଣିବେ ଯେବେ,
ପୁଣି ତୋର ମୁହଁ ନ ଚାହିଁବେ ଲୋ । ୨୦ ।
ଫୁଲଶେଯରେ ମଥା ଠେକି ଜେମା କଥା ନଣନ୍ଦକୁ ନ କହିବୁ,
ଫଜିତ କରଣ ସତ ମିଛ କହି ତାହା ସହି ନ ପାରିବୁ ଲୋ,
ଫେଡ଼ି କହିଲି ମୁହିଁ,
ଫିସାଦିଆ ତୋ କାନ୍ତ ଅଟଇ ଲୋ । ୨୧ ।
ବୋଧି ମାତା ରାଣୀ ହୋଇଲେକ ଛନ୍ନ ଜେମାଦେଈଙ୍କ ଅନେକ,
ବିଦାଳରେ ବନ୍ଧୁ ବାନ୍ଧବେ ଅଇଲେ ବୁଝାଇ ନେହୁ ସେତକ ଯେ,
ବସି ଜେମାକୁ ଘେରି,
ବୁଝାଇଲେ କେତେ କେଉଁ ଭଳି ଯେ । ୨୨ ।
ଭାଇ ଭାଉଜଙ୍କ ପାଶେ ମିଳି ଜେମା କହନ୍ତି କରିକି ଧରି,
ଭଲ କଲ ବହୁ ଅଙ୍କଠାରୁ ମୋତେ ମନୁ ନ ଦେବ ପାସୋରି ଗୋ,
ଦେଖି ପାରନ୍ତି ଭାଇ,
ଯିବେ ସଙ୍ଗତେ ଭାର ଘେନାଇ ଗୋ । ୨୩ ।
ମରମକଥା ଯେ ଗୁପତେ ଭାଉଜ କହନ୍ତି ଶୁଣ ଜେମାଦେଈ,
ମଧୁ ଶଯ୍ୟାକୁ ଯିବାବେଳେ ଦାସୀଏ ଦେଇଲେ ଦେବେ ବଳାଇ ଲୋ,
ମଥାପୋତି ରହିବୁ,
ଫୁଲ ଶେଯକୁ ବଳେ ନ ଯିବୁ ଲୋ । ୨୪ ।
ଜଳୁଥିବ ମାଣିକ୍ୟର ଦୀପାବଳୀ ତହିଁକି ଚାହିଁବୁ ନାହିଁ,
ଯେବେ କାନ୍ତ କର ଧରିବେ ତୋହର ଯିବୁ ପଛଘୁଞ୍ଚା ଦେଇ ଲୋ,
ଯେତେ କହିଲେ କଥା,
କେତେବେଳେ ନ ଠେକିବୁ ମଥା ଲୋ । ୨୫ ।
ରାଣ ପକାଇଣ ପଣନ୍ତ ଧରିଣ କୋଳ କରିବେ ବହୁତ,
ଲୁଚିଲି ସରମେ ଅଲପକେ ହୋଇ ପଲଙ୍କରେ ବସିବୁ ତ ଲୋ,
ରସରଙ୍ଗେ ଆଳାପ,
ରାତିଯାକ ନ କରିବୁ ଗପ ଲୋ । ୨୬ ।

ସୁବର୍ଣ୍ଣ ନିମ୍ବର ସବୁ ସଙ୍ଗାତ ଯେ ପାଶରେ ଅସି ମିଳିଲେ,
ଲଗାଇ ଶଳାରେ ଗଳା ପ୍ରେମଶୀଳା କାନ୍ଦି କେ କିସ କହିଲେ ଯେ,
ବହୁ କଲ୍ଲକ ଏହା,
ଲକ୍ଷେଶ୍ୱର ହେଲେ ତୋର ନାହା ଗୋ । ୨୭ ।
ବେଶ ସାରି ଜେମାଦେଈଙ୍କ ବାଳୀଏ ହୁଳହୁଳିମାନ ଦେଇ,
ବାନ୍ଧବୀର କର ଧରଣ ନିଅନ୍ତି କାନ୍ଦନ୍ତି ସେ ଜେମାଦେଈ ଯେ,
ବର କନ୍ୟାଙ୍କୁ ନେଲେ,
ଯତ୍ନେ ହାନ୍ଦୋଳାରେ ବସାଇଲେ ଯେ । ୨୮ ।
ଶ୍ରଦ୍ଧାରେ ଅନେକ ଦେଲେ ଯଉତୁକ ସନ୍ତୋଷରେ ନୃପମଣି,
ସଖିଗଣ ଅସି ଅର୍ଘ୍ୟ ବନ୍ଦାଇଣ ଜେମାକୁ ଦେଲେ ମେଲାଣି ଯେ,
ସଙ୍ଗେ ଅନେକ ଜନ,
ଶୁଭୁଅଛି ବାଦ୍ୟନାଦମାନ ଯେ । ୨୯ ।
ସମୁଧିର କର ଧରଣ ସମୁଧି ବୋଧିଣ କହିଲେ କେତେ,
ସବୁ କଥା ଏବେ ଲାଗିଲା ତୁମ୍ଭଙ୍କୁ ବଗୃର ରଖିବ ଟତେ ହେ,
ମୋର ଜେମାକୁ ପୁଣି,
ଗାଳି ନ ଦେବଟି ସମୁଦୁଣୀ ଗୋ । ୩୦ ।
ଶାଶୁ ଶ୍ୱଶୁର ଯେ ବାପ ମାଅଠାରୁ ବଳି ସହଣିକ ସିନା,
ସରମ ନ ଦେବ ଜେମାକୁ ମୋହର କରିବଟି ଦୋଷ ଷମା ହେ,
ଶୁଣ ବଚନ ମୋର,
ଶୀଘ୍ର ଚଳିଯାଅ ନିଜପୁର ହେ । ୩୧ ।
ହାନ୍ଦୋଳାରେ ଜେମାଦେଈ ଯେ ବସିଲେ ବର ବଜେ ପାଲିଙ୍କିରେ,
ହୁହାଁ ହୁହାଁ ଡାକ ଗଉଡ଼େ ଦିଅନ୍ତି ଉହୁଳି ପଡ଼େ ମଣ୍ଡିରେ ଯେ,
ହୁଳହୁଳି ଶବଦେ
ଦାଣ୍ଡ ଉହୁଳଇ ବାଦ୍ୟନାଦେ ଯେ । ୩୨ ।
କ୍ଷଣକ ମଧରେ ମେଲାଣି ହୋଇଣ ଗୃହିଗଲେ ଯେଝାମତେ,
କ୍ଷମେ ହରିଦାସ ଗୀତରେ କହୁଲେ ପ୍ରଭୁ ଦୟାକର ମୋତେ ହେ,
କ୍ଷମା ସାଗର ହୋଇ,
କ୍ଷଣମାନ ଦୁଃଖ ଯାଉନାହିଁ ହେ । ୩୩ ।

# କ୍ଷେମାଦେଈଙ୍କ କାନ୍ଦ

ବକ୍ଷ ଲଗ୍ନରେ ପୁଣି, ବର କନ୍ୟା ମେଳଣି ।
ଅତି କ୍ରୋଧଭରେ କାନ୍ଦେ କ୍ଷେମା ଦୁଲଣୀ । ୧ ।
ସାଇ ପଡ଼ଶା ଘେରି, ତାକୁ ପ୍ରବୋଧ କରି ।
ନ କାନ୍ଦ ନ କାନ୍ଦ ଜେମା କହୁଲେ ଧରି । ୨ ।
ଶୁଣି ଜନନୀ ଧାଇଁ, ଝିଅ କୋଳେ ବସାଇ ।
ଅହା ମୋ ଦୁଲଣୀ କେଣ୍ଡେ ମୂର୍ଚ୍ଛିବ ମୁହିଁ । ୩ ।
କ୍ଷେମା ବୋଲଇ ମାତ, ମୋତେ କେତେ ପାଳିଛ ।
ଜାଣୁ ଜାଣୁ ଦରିଅକୁ ପେଲି ଦେଉଛ । ୪ ।
ଖଡ଼ୀ ଖଡ଼ୁତା ଶୁଣି, ଚକ୍ଷୁଁ ବୁହାଇ ପାଣି ।
ଯିବୁ ଅସିବୁ ଲୋ ଝିଅ ନ ଭୁଲି ପୁଣି । ୫ ।
କ୍ଷେମା ସେଠାରୁ ଗଲା, ପିତା ଛାମୁରେ ହେଲା ।
କରିଁ କରିଁ ହୋଇ କ୍ଷେମା ରୋଦନ କଲା । ୬ ।
ପିତା ଜନମ ଦେଇ, ମୋତେ ଥିଲ ବଢ଼ାଇ ।
ଏବେ ପେଲି ଦେଉଅଛ ସମୁଦ୍ରେ ନେଇ । ୭ ।
କୋହେ ବୋଲଇ ପିତା, ଅଲୋ ଶୁଣ ଦୁହିତା ।
ଏହା ଯେ ଜଗତେ ରଚିଅଛି ବିଧାତା । ୮ ।
କ୍ଷେମା କାନ୍ଦଇ ବେଶେ, ଖୁଡ଼ୀ ଖୁଡ଼ୁତା ପାଶେ ।
ଦେଖୁ ଦେଖୁ ଦେଲ ଏବେ ଦୂର ବିଦେଶେ ! ୯ ।
ଖୁଡ଼ୀ ବୋଲେ ଝିଅଟି, କର୍ମେ ଥିଲା ତୋହର ।
ହେଲେ କାଲପର ତୁ ଲୋ ଅସିବୁ ଫେରି । ୧୦ ।
କ୍ଷେମା ବିକଳ ହୋଇ, ଖୁଡ଼ୁତାକୁ ଅନାଇ ।
ମାଆ ଖୁଡ଼ୀଙ୍କର ଦୋଷ ଧେନବ ନାହିଁ । ୧୧ ।
କ୍ଷେମା ବୋଲଇ ଯେତେ, ଖୁଡ଼ୁତାଙ୍କ ଅଗ୍ରତେ ।
ଶବଦ ଅନ୍ତର ଦେବ ବାଳକ ହାତେ । ୧୨ ।
କେଠା କେଠାଇ ଭଲ, ଅଲୋ ଶୁଣ ଝିଅଟି ।
ଦେଖି ସୁପୁରୁଷ ବର ଦେଇଛୁଁ କରି । ୧୩ ।

କେଠା କେଠାର ଶୁଣ, ତୁମ୍ଭେ [illegible] ଦାରୁଣ ।
ଦେଖି ଦେଖି ଦୂର ଦେଶେ ଦେଲଟି ପୁଣ । ୧୪ ।
ଅଗୋ ମଉଳା ମାଈଁ, ମୋତେ ଦେଲ ଭସାଇ ।
କେମା ପରେ ଦୟା ଅଜ ରଖିଲ ନାହିଁ । ୧୫ ।
ଜ୍ୟେଷ୍ଠ ଭାଇଙ୍କ ହାତ, କେମା ଧରି ତୁରତ ।
ଭାଇ ମୋତେ ନ କରିବ କବଣ ଚତ୍ର । ୧୬ ।
ତୁମ୍ଭେ ଭାଇ ସୋଦର, ବାଣୀ ଶୁଣ ମୋହର ।
କରିଥିଲ କେତେ ମୋତେ ଗେଲବସର । ୧୭ ।
ଭାଇ ବୋଲେ ଭଉଣୀ, ତୋତେ ଯିବ ନେଇ ଅଣି ।
କପାଇଁ ମନରେ କରୁଅଛ ଭାଳେଣି । ୧୮ ।
ତୋତେ ଡୋଲି ଚଢ଼ାଇ, ଘେନ ଅସିବ ମୁହିଁ ।
ଶାଶୁଘରେ ଥିବୁ ଶୋକ ସନ୍ତାପି ନୋହୁ । ୧୯ ।
ଭାଇଠାରୁ ଏମାନ, ଶୁଣି କରି ବହନ ।
ଭାଉଜ ପାଖକୁ କେମା କଲେ ଗମନ । ୨୦ ।
କାନ୍ଦେ ଦେଇଣ କର, ମୁଖେ ମୁଖ ତାହାର ।
ବୋଲେ ବୋହୂରାଣୀ ମୋତେ ନ କର ପର । ୨୧ ।
କେମା କେମା ବୋଲିଣ, କଏ ଡାକିବ ପୁଣ ।
କାହୁଁ ଶୁଝିବ ଭାଉଜ ତୁମ୍ଭର ଗୁଣ । ୨୨ ।
ବୋହୂ ବୋଲେ ନଣନ୍ଦ, ମୋତେ କରିଣ ଅନ୍ଧ ।
କଏ ଘେନଯିବ ମୋର ଜଦଅଗୃନ୍ଦ । ୨୩ ।
ଅଗୋ ଶୁଣ ନଣନ୍ଦେ, ମୁଁ ଯେ କହଇ ପଦେ ।
ଉତ୍କଣ୍ଠ ନୋହିବ ଶାଶୁ ଶ୍ୱଶୁର ସଙ୍ଗେ । ୨୪ ।
ସଙ୍ଗ ପିଲାବାଳର, ମିଳଗଲେ ଅପାର ।
ଜଣେ ଜଣେ କେମାକୁ ସେ କରନ୍ତ କୋଳ । ୨୫ ।
ଥାଅ ନଶ୍ଚିନ୍ତ ହୋଇ, ଚଢ଼ ଯାଉଛ ମୁହିଁ ।
ତାହାକୁ ଲୋଡ଼ିବ ଅସ ଯିବା ଗାଧୋଇ । ୨୬ ।
ଅଗୋ ଚମ୍ପା ବଉଳ, ତୁମ୍ଭ ଅମ୍ଭର ମେଳ ।
ଅଛଠାରୁ ଭାଙ୍ଗି ଦେଲ ବନ କୋକିଳ । ୨୭ ।

ଅଗୋ ସହ ସଙ୍ଗାତେ, ଦୟା ଥିବଟି ଶତେ ।
ତୁମ୍ଭ ଅମ୍ଭ ଭେଟ ହେବ ଅଶୋକାଯାତେ । ୨୮ ।
ଅଗୋ କଅ କେତକୀ, ତୁମ୍ଭ ସଙ୍ଗ ଏତକ ।
କେମନ୍ତେ ରହିବ ଭୁଲି ତୁମ୍ଭ ପ୍ରୀତକ । ୨୯ ।
କରିଲ କରମାଖୀ, ମୋର କି ଦୋଷ ଦେଖି ।
ଆଉ କି ତୁମ୍ଭ ଶ୍ରୀମୁଖ ଦେଖିବ ଆଖି । ୩୦ ।
ଅଗୋ ଅଶୋକା କଢ଼ି, ସଙ୍ଗ ଯାଉଛ ଛାଡ଼ି ।
ମନେ କରୁଥିବ ମୋତେ ଘଡ଼ିକ ଘଡ଼ି । ୩୧ ।
ସର୍ବେ କନ୍ୟାକୁ ଘେରି, କହୁଛନ୍ତି ତଅରି ।
ଶାଶୁ ଶ୍ୱଶୁରଙ୍କ ସେବା ଥିବୁ ଲୋ କରି । ୩୨ ।
ନିଜ ସ୍ୱରସ୍ତଠାଇଁ, ସ୍ନେହ ଥିବୁ ଲଗାଇ ।
ଅଗ ନ କହିବୁ କଥା ମୁଖରୁ ଗୃହି । ୩୩ ।
ଦେଢ଼ଶ୍ୱଶୁର ଦିଅର, ସବୁ ଅଟନ୍ତି ତୋର ।
ତାଙ୍କ ମନ ନେଲେ ଜେମା କରିବୁ ଘର । ୩୪ ।
ଟୋକା ଦିଅର ଯେତେ, ଟାହି ଟାପରା ତୋତେ ।
କରିବେ କହିଁତେ ରୋଷ ନୋହିବୁ ଶତେ । ୩୫ ।
ତାକୁ ପ୍ରବୋଧ କରି, ସର୍ବେ କହନ୍ତି ଘେରି ।
ବାଜିଲା ଶଙ୍ଖ ମହୁରି ପଡ଼ିଲା ହୁରି । ୩୬ ।
ଜେମା ନେବା ସମ୍ଭାର, ଘରୁ କଲେ ବାହାର ।
ପେଡ଼ି ଅଡ଼ଣୁରିମାନ ଭରିକି ଭର । ୩୭ ।
ମିଳି ସମସ୍ତ ବାଳୀ, ଦେଇ ସେ ହୁଳହୁଳି ।
ପାଲିଙ୍କି ଆସିଣ ଦାଣ୍ଡ ଦୁଆରେ ମିଳି । ୩୮ ।
ସର୍ବେ କଲ୍ୟାଣ କଲେ, ଜେମା ଉଠି ବସିଲେ ।
ଦୀନବନ୍ଧୁ ଫକୀର ଏ ପଦକଳା ବୋଲେ । ୩୯ ।

—ସ ମା ପ୍ତ—

ମୁଦ୍ରାକର—ଶ୍ରୀ ଲକ୍ଷ୍ମୀଧର ଗଗବଡ଼ୁ, ଶ୍ରୀରାଧାରମଣ ପ୍ରେସ,
କଟକ—୧୯୫୧

